ଆମ ଗ୍ରହ ଓ ଉପଗ୍ରହ

# ଆକାଶ

ଲେଖକ—

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ଦ୍ୱିତୀୟ ସଂସ୍କରଣ

ପ୍ରକାଶକ—

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ କୋ:

ବ୍ରହ୍ମପୁର : କଟକ : ସମ୍ବଲପୁର

୧୯୫୪

ମୂଲ୍ୟ ଟ ୦ ।/ ପାଞ୍ଚଅଣା ମାତ୍ର

# ଆମ ଗ୍ରହ ଓ ଉପଗ୍ରହ

ସୂର୍ଯ୍ୟ

ଚନ୍ଦ୍ର

ପୃଥିବୀ

ମଙ୍ଗଳ

ଆକାଶମଣ୍ଡଳ

ପ୍ରତ୍ୟେକର ମୂଲ୍ୟ ପାଞ୍ଚଅଣା

# ଆକାଶ

ଆମେ ଥରେ ବୁଲି ବାହାରିଲୁ—ମୁଁ ଆଉ ମୋର ଜଣେ ସାଙ୍ଗ ।

ଆଜିକାଲି ଲୋକେ ନିଜ ଦେଶର ବିଭିନ୍ନ ସ୍ଥାନକୁ ଯାଇ ବୁଲନ୍ତି । ବେଶି ବାଟ ଅବା କେହି ଗଲେ, ଇଉରୋପ୍-ଆମେରିକା ଆଦି ଦେଶ ବୁଲିଆସନ୍ତି । କିନ୍ତୁ ଆମେ ଏସବୁ ଦେଶକୁ ଗଲୁ ନାହିଁ । ଗଲୁ ଏକାବେଳକେ ଗୋଟାଏ ନୂଆ ରାଜ୍ୟକୁ । ଆମ ମୁଣ୍ଡ ଉପରେ ଯେଉଁ ଅନନ୍ତ, ଅସୀମ ଆକାଶ ଦେଖାଯାଉଛି—ତାହାର ଭିତରକୁ ବୁଲିଗଲୁ ।

ସେଠାକୁ ଯିବାକୁ ହେଲେ ତ ଉଡ଼ାଜାହାଜ ଦରକାର । କାରଣ, ସେସବୁ ଅଞ୍ଚଳକୁ ରେଳ କି ମଟର ଯିବାକୁ ବାଟ ନାହିଁ । ତେଣୁ ଆମେ ଗୋଟିଏ ଉଡ଼ାଜାହାଜ ମନେ ମନେ ଠିକ୍ କରିନେଲୁ । ଆଜିକାଲି ସବୁଠାରୁ ଭଲ ଉଡ଼ାଜାହାଜ ଯେ ତିଆରି ହୋଇଛି, ତାହା ଘଣ୍ଟାକେ ସାତଶହ ମାଇଲ ପର୍ଯ୍ୟନ୍ତ ବାଟ ଯାଇପାରେ । କିନ୍ତୁ ଆମେ ଏପରି ଗୋଟିଏ ଉଡ଼ାଜାହାଜ

ଠିକ୍ କଲୁ, ସେ କି ଘଣ୍ଟାକେ ଲକ୍ଷେ ମାଇଲ ଯାଇପାରିବ । ସେଥିରେ ଯେ ଇଞ୍ଜିନ ଚଳାଉଥିଲେ, ସେ ଆକାଶ ବିଷୟରେ ବହୁତ କଥା ଜାଣନ୍ତି ।

ଦୁଇଶହ ମାଇଲ ଉପରକୁ ଉଠିବା ଯାଏ ଆମେ ବିଶେଷ କିଛି ଜାଣିପାରିଲୁ ନାହିଁ । ତା ପରେ ଆମ ନିଃଶ୍ୱାସ ବନ୍ଦ ହୋଇ ଆସିଲା, ଦେହରୁ ରକ୍ତ ଶୁଖିଗଲା ପରି ବୋଧହେଲା । ଆମକୁ ଜଣାଗଲା, ଆମ ଦେହ ଯେପରି ଟିକିଏ ତୁଳା ପରି ହାଲୁକା । ଏପରି କାହିଁକି ହେଲା, ଆମେ ତାହା ବୁଝି ନ ପାରି ଉଡ଼ାଜାହାଜ ଚାଳକଙ୍କୁ ଚାହିଁଲୁ ।

ଚାଳକ କହିଲେ—ପୃଥିବୀଠାରୁ ଉପରକୁ ଦୁଇଶହ ମାଇଲଯାଏ ବାୟୁସ୍ତର ରହିଛି । ଏପର୍ଯ୍ୟନ୍ତ ଆମେ ସେହି ବାୟୁ ଭିତରେ ଉଡ଼ି ଉଡ଼ି ଆସୁଥିଲେ । ଦୁଇଶହ ମାଇଲ ପରେ ଆଉ ବାୟୁସ୍ତର ନାହିଁ । ବାୟୁ ଭିତରେ ବୁଡ଼ି ରହିବା ଆମର ଅଭ୍ୟାସ ହୋଇଯାଇଛି । ତେଣୁ ବାୟୁ ନ ଥିବା ଜାଗାକୁ ଆସିଲେ ଆମକୁ ଏପରି କଷ୍ଟ ହେଉଛି ।

ଯାହାହେଉ, ସବୁ କଷ୍ଟ ଆମେ ସହିଗଲୁ । ସେ ଉଡ଼ାଜାହାଜ ଭିତରେ ମଧ୍ୟ ଏପରି ଯନ୍ତ୍ର ଥିଲା, ଯାହା ଭିତରେ କି ବାୟୁ ପୂରି ରହିଥିଲା । ସେହି ବାୟୁ ପାଇ ଆମକୁ ଟିକିଏ ମଧ୍ୟ ସୁସ୍ଥ ବୋଧହେଲା ।

ଆମେ ଅଠେଇଘଣ୍ଟା ମଧ୍ୟରେ ଯାଇ 'ଚନ୍ଦ୍ରମାମୁଁ' ଦେଶରେ ପହଞ୍ଚିଗଲୁ । ସେଠାରେ ଦେଖିଲୁ, ଗଛଲତା କି ଜୀବଜନ୍ତୁ ଗୋଟିଏ ହେଲେ ନାହିଁ, ଚାରିଆଡ଼ ଖାଲି ଶୁଖିଲା ଠକ୍ଠକ୍ ।

ସେଠାରେ ଆଉ ରହିବାକୁ ଜମା ମନ ହେଲା ନାହିଁ *। ସେଠାରୁ ଆଗକୁ ଚାଲିଲୁ ।

ସାଙ୍ଗ ଜଣକ କହିଲେ—ଆମ ପଛରେ ଆଉ ଦୁଇଟି 'ଗ୍ରହ ରହିଗଲେ । ସେଠାକୁ ନ ଗଲେ ତ ହେବ ନାହିଁ ।

ଉଡ଼ାଜାହାଜ ଚାଳକ କହିଲେ, "ହଁ, ଆମ ପଛରେ ଆଉ ଦୁଇଟି ଗ୍ରହ ରହିଗଲେ । ମାତ୍ର ଆମେ ସେଠାକୁ ଯାଇପାରିବା ନାହିଁ । ସେ ଦୁଇଟି ଗ୍ରହ ହେଉଛନ୍ତି ଶୁକ୍ର ଓ ବୁଧ । ଶୁକ୍ର ପୃଥିବୀଠାରୁ ଦୁଇକୋଟି ବାଷଠୀ ଲକ୍ଷ (୨,୬୨,୦୦୦୦୦) ମାଇଲ୍ ଦୂରରେ ରହିଛି । ଆମେ ପୃଥିବୀରୁ ବାହାରି ଆମ ଉଡ଼ାଜାହାଜରେ ସେଠାକୁ ଯାଉଥିଲେ ରାତି ଦିନ ଲାଗି ଏଗାର ଦିନରେ ସେଠାରେ ପହଞ୍ଚି ଥାଆନ୍ତେ । ମାତ୍ର ସେଠାରେ ଗରମ ଅତି ବେଶି । ଶୁକ୍ର ଗ୍ରହ ସୂର୍ଯ୍ୟଠାରୁ ମୋଟେ ଛଅକୋଟି ସତୁରି ଲକ୍ଷ ମାଇଲ୍ ଦୂରରେ ରହିଛି । ତେଣୁ ସୂର୍ଯ୍ୟକିରଣ ସେଠାରେ ଏତେ ପ୍ରଖର ଯେ, ତାହା ସବୁବେଳେ ତାତି ଥାଏ, ଯେପରି କି ଗୋଟାଏ ଲୁହା ପିଣ୍ଡୁଳା ନିଆଁରେ ପାଚିପାଚି ରହିଥାଏ, ଠିକ୍ ସେହିପରି । ତେଣୁ ସେଠାକୁ ଆମେ ଆଦୌ ଯାଇପାରିବା ନାହିଁ ।

ମୁଁ ପଚାରିଲି—ତେବେ ତା ବିଷୟରେ ଆମେ କଅଣ କିଛି ଜାଣିପାରିବା ନାହିଁ ?

ଉଡ଼ାଜାହାଜ ଚାଳକ କହିଲେ—ଶୁକ୍ର ଗ୍ରହ ଆମ ପୃଥିବୀରୁ ଖୁବ୍ ଚକ୍‌ଚକ୍ ଦେଖାଯାଏ । ତାକୁ ଆମେମାନେ ଶୁକତାରା

* 'ଜହ୍ନମାମୁ' ସଂପର୍କରେ ବେଶି କଥା ଭୂଗୋଳ ଖଣ୍ଡ 'ଚନ୍ଦ୍ର' ବହିରେ ଲେଖା ଅଛି ।

ବୋଲି କହନ୍ତି । ବେଳେ ବେଳେ ଭୋର ସମୟରେ ଠିକ୍ ସୂର୍ଯ୍ୟ ଦେଖାଦେବା ଆଗରୁ ତାହା ପୂର୍ବ ଦିଗରେ ଦେଖାଯାଏ । ବର୍ଷର କେତେକ ସମୟରେ ମଧ୍ୟ ସନ୍ଧ୍ୟାବେଳେ ଏହା ପଶ୍ଚିମ ଦିଗରେ ଦେଖା ଦେଇଥାଏ ।

ମୁଁ ପଚାରିଲି—"ଆମ ପୃଥିବୀ ପରି ଶୁକ୍ରଗ୍ରହ କଅଣ ସୂର୍ଯ୍ୟ ଚାରିପାଖରେ ଘୂରେ ?

ଜଡ଼ଜାହାଜ ଖୁଲକ କହିଲେ—"ସବୁ ଗ୍ରହ ସୂର୍ଯ୍ୟ ଚାରି ପାଖରେ ବୁଲନ୍ତି, ଆଉ ମଧ୍ୟ ନିଜ ଅକ୍ଷଦଣ୍ଡରେ ବୁଲନ୍ତି । ଥରେ ସୂର୍ଯ୍ୟ ଚାରିପାଖରେ ଘୂରି ଆସିବାକୁ ଶୁକ୍ରକୁ ମୋଟେ ଦୁଇଶହ ପଚିଶ ଦିନ ସମୟ ଲାଗେ ।

ଆମ ପୃଥିବୀକୁ ଶୁକ୍ର ସବୁ ସମୟରେ ଏକାପରି ଦେଖାଯାଏ ନାହିଁ । ବର୍ଷକ ମଧ୍ୟରେ ଦେଢ଼ମାସ ଯାଏ ତ ମୋଟେ ଆମେ ତା ଦର୍ଶନ ପାଉ ନାହିଁ । ବାକୀ କେତେ ମାସ ଭୋର ସମୟରେ ଦେଖୁଁ ତ, କେତେ ମାସ ସନ୍ଧ୍ୟା ସମୟରେ ଦେଖିଥାଉଁ । କେବେ ଏପରି ଦିନବେଳା ବି ଶୁକ୍ରତାରା ଦେଖାଯାଇଥାଏ ।

ଚନ୍ଦ୍ର ପରି ଏହାର ଆକାର ମଧ୍ୟ ବଦଳିଲା ଭଳି ଜଣାଯାଏ । ସୂର୍ଯ୍ୟ ଚାରିପାଖରେ ତ ସବୁ ଗ୍ରହ ବୁଲୁଅଛନ୍ତି ; ପୃଥିବୀ ଓ ଶୁକ୍ର ବୁଲୁ ବୁଲୁ ଯେତେବେଳେ ସୂର୍ଯ୍ୟ ଓ ପୃଥିବୀ ମଝିରେ ଶୁକ୍ର ରହେ, ସେତେବେଳେ ତାହା ଆମ ଆଖିକୁ ଦିଶେ ନାହିଁ । କାରଣ ଶୁକ୍ରର ଯେଉଁ ପାଖ ସୂର୍ଯ୍ୟ ଆଡ଼କୁ ଥାଏ, ସେହି ପାଖରେ ଆଲୁଅ ପଡ଼େ ; ଯେଉଁ ପାଖ ପୃଥିବୀ ଆଡ଼କୁ ଥାଏ, ସେ ପାଖ ଅନ୍ଧାର । ତେଣୁ ପୃଥିବୀ ଆଉ ଦେଖିବ କଅଣ ?

ପୁଣି ଶୁକ୍ର ଘୂରି ଘୂରି ଯେତେବେଳେ ସୂର୍ଯ୍ୟ ଆରପାଖକୁ ଚାଲିଯାଏ, ସେତେବେଳେ ସୂର୍ଯ୍ୟ ପଛରେ ରହେ । ଶୁକ୍ର ଓ ପୃଥିବୀ ସୂର୍ଯ୍ୟର ଦୁଇ ପାଖରେ ରହିଯାଆନ୍ତି । ଶୁକ୍ରର ଯେଉଁ ପାଖରେ ସୂର୍ଯ୍ୟ କିରଣ ପଡ଼େ, ସେହି ପାଖ ପୃଥିବୀ ଆଡ଼କୁ ଥାଏ; ତେଣୁ ଆମେ ଶୁକ୍ରକୁ ଗୋଲାପୁରା ଦେଖିପାରୁଁ ।



[ ଶୁକ୍ର ଗ୍ରହର ବିଭିନ୍ନ ଅବସ୍ଥା ]

ଏହି ଗ୍ରହରେ ଜୀବଜନ୍ତୁ କିଛି ନାହାନ୍ତି ବୋଲି ପଣ୍ଡିତମାନେ କହନ୍ତି । କାରଣ, ଏଠାରେ ଅସହ୍ୟ ତାତ । ତଥାପି ପାହାଡ଼ ପର୍ବତ, ଖାଲ ଢିପ ଜାଗା ରହିଛି । ଶୁକ୍ର ଗ୍ରହର ଏପାଖରୁ ସେପାଖକୁ ଗୋଟିଏ କାଠି ଫୋଡ଼ିଦେଲେ, ସେହି କାଠିର ଲମ୍ବ ହେବ ସାତ ହଜାର ଛଅ ଶହ ଷାଠିଏ (୭,୬୬୦) ମାଇଲ । ଏହାର ଗୋଟିଏ ହେଲେ ଉପଗ୍ରହ ନାହିଁ ।

"ଶୁକ୍ର ସମ୍ପର୍କରେ ମୁଁ ଏତିକି ମାତ୍ର ଜାଣିଛୁ"—ଏହା, କହି ଜଡ଼ାଜାହାଜ ଗୃଳକ ତୁନି ହେଲେ ।

ମୋ ସାଙ୍ଗ ପଚାରିଲେ—ତେବେ ବୁଧ ଗ୍ରହର ଅବସ୍ଥା କଅଣ, ତାହା ତ କହିଲ ନାହିଁ ।

ଗୃଳକ ଜବାବ ଦେଲେ—ସେଠାକୁ ଯିବା ତ ଅଧିକ ଅସମ୍ଭବ । ବୁଧ ସୂର୍ଯ୍ୟଠାରୁ ମୋଟେ ତିନିକୋଟି ଷାଠିଏଲକ୍ଷ (୩,୬୦,୦୦,୦୦୦)ମାଇଲ ଦୂରରେ ରହିଛି; ତେଣୁ ଶୁକ୍ର ଅପେକ୍ଷା ସେଠାରେ ଗରମ, ଅଧିକ ବେଶି । ତା ପାଖକୁ ଗଲାବେଳକୁ ଆମେ ଓ ଆମର ଏ ଜଡ଼ାଜାହାଜ ପୋଡ଼ି ପାଉଁଶ ହୋଇ ଯାଇଥିବ । ତେବେ ତା ବିଷୟରେ ଏତିକି ଜଣାଯାଇଛି ଯେ, ତାହା ପୃଥିବୀଠାରୁ ପାଞ୍ଚକୋଟି ସତୁରୀଲକ୍ଷ (୫,୭୦,୦୦୦୦୦) ମାଇଲ ଦୂରରେ ରହିଛି । ତାର କୌଣସି ଉପଗ୍ରହ ନାହାନ୍ତି ।

ବୁଧ ସୂର୍ଯ୍ୟ ତେଜରେ ଏପରି ବୁଡ଼ି ଯାଇଥାଏ ଯେ, ପୃଥିବୀରୁ ସାଧାରଣତଃ ଦେଖାଯାଏ ନାହିଁ । ପଣ୍ଡିତମାନେ ଦୂରବୀକ୍ଷଣ ଯନ୍ତ୍ରରେ ଦେଖି ଏବଂ ହିସାବ କିତାବ କରି ତା ବିଷୟରେ ଯାହା କିଛି ଲେଖି ଯାଇଅଛନ୍ତି । ପୁଣି ବୁଧ ଗ୍ରହ ସବୁ ଗ୍ରହ ଠାରୁ ସାନ । ତାହାର ଏମୁଣ୍ଡରୁ ସେମୁଣ୍ଡ ଯାଏ ଗୋଟିଏ ଧଣା କଲେ, ସେ ଧଣାର ଲମ୍ବ ହେବ, ତିନିହଜାର ଶହେ ମାଇଲ । ବୟସ ମଧ୍ୟ ତାର ଅନ୍ୟାନ୍ୟ ଗ୍ରହ ଠାରୁ ଅଳ୍ପ । ସୂର୍ଯ୍ୟ ଚାରିପାଖରେ ଏହା କେବଳ ଅଠାଅଶି ଦିନରେ ଥରେ ବୁଲିଆସେ ।

ଜଡ଼ାଜାହାଜ ଗୃଳକ ଜଡାଜାହାଜ ଚଳାଉଥାଅନ୍ତି, ତା ସାଙ୍ଗେ ସାଙ୍ଗେ ଆମକୁ ଶୁକ୍ର ଓ ବୁଧ ଗ୍ରହ କଥା କହୁଥାଅନ୍ତି ।

ଗୁହୁଁ ଗୁହୁଁ ଆମେ ଆସି ମଙ୍ଗଳ ଗ୍ରହରେ ପହଞ୍ଚିଗଲୁ । ସେତେବେଳକୁ ପୃଥିବୀରୁ ବାହାରିବାର କୋଡ଼ିଏ ଦିନ ଦଶଘଣ୍ଟା ହୋଇଥାଏ ।

ଜଡ଼ାଜାହାଜ ଗୁଳକ କହିଲେ—ଆମେ ଏଠାରେ ଓହ୍ଲା-ଇବା ନାହିଁ । ମଙ୍ଗଳ ଗ୍ରହରେ ଆମ ଅପେକ୍ଷା ବହୁ ବଡ଼ ପଣ୍ଡିତ ଓ ବୁଦ୍ଧିଆ ଲୋକ ଅଛନ୍ତି । ସେମାନେ ଆମକୁ ଦେଖିଲେ ଓ ଆମ ସାଙ୍ଗରେ କଥାବାର୍ତ୍ତା କଲେ, ଆମକୁ ବୋକା ବୋଲି ମନେ କରିବେ । ଚାଲ ଆମେ ସିଧା ସଳଖ ଆଗକୁ ମୁହାଁଇବା* ।

ଜଡ଼ାଜାହାଜ ସେଠାରେ ନ ରହି ଆଗକୁ ଗଲା ।

କେତେକ ବାଟ ଗଲା ପରେ ଜଣାଗଲା, ଆମ ଜଡ଼ାଜାହାଜଟା ଯେପରି ଗୋଟାଏ ଜଙ୍ଗଲ ଭିତରେ ପଶିଯାଇଛି । ଚାରିଆଡ଼େ ଖାଲି ଗ୍ରହ ସାଲୁବାଲୁ । ଏତେ ଗ୍ରହ ଯେ, ତାକୁ ଠେଲି ପଦାକୁ ବାହାରିବା କଷ୍ଟକର ହୋଇପଡିଲା । ଯାହାହେଉ ଆମ ଜଡ଼ାଜାହାଜଟି ସେ ଗ୍ରହ-ଜଙ୍ଗଲରୁ ମୁକୁଳି ପଦାକୁ ଆସିଲା ।

ଗୁଳକ କହିଲେ—ଏହି ଗ୍ରହଗୁଡ଼ିକୁ ଛୋଟଗ୍ରହ ବା 'ଗ୍ରହାଣୁ-ପୁଞ୍ଜ' କୁହାଯାଏ । ଏଗୁଡ଼ିକ ଅତି ସାନ । ଏମାନଙ୍କ ମଧ୍ୟରୁ ଯେ ସବୁଠାରୁ ବଡ଼, ତାର ମଝିଡାଠି (ବ୍ୟାସ)ର ଲମ୍ବ. ମୋଟେ ତିନିଶହ ମାଇଲ । ତିନି ଚାରି ମାଇଲ ଲମ୍ବ ବ୍ୟାସର ସାନ ସାନ ଗ୍ରହ ମଧ୍ୟ ଏଥିରେ ଅଛନ୍ତି । ଏ ପର୍ଯ୍ୟନ୍ତ ପଚାଶ ଶହ ଗ୍ରହ ଏଠାରେ

---

* ମଙ୍ଗଳ ଗ୍ରହ ସମ୍ପର୍କରେ ସବୁ କଥା ଚତୁର୍ଥ ଖଣ୍ଡ 'ମଙ୍ଗଳ ଗ୍ରହ' ବହିରୁ ଜାଣିପାରିବ ।

ଏପରି ଏକୋଟି ଥିବାର ପଣ୍ଡିତମାନେ ହିସାବ କରିଅଛନ୍ତି । ଆଉ ବେଶି ବି ଥିବେ—କିନ୍ତୁ ଦିନ ପରେ ତାହା ଜଣା ପଡ଼ିପାରେ । ଏ ସମସ୍ତେ ଅନ୍ୟ ଗ୍ରହ ପରି ସୂର୍ଯ୍ୟ ଚାରି ପାଖରେ ବରାବର ଘୂରୁଅଛନ୍ତି ।



[ ବୃହସ୍ପତି ]

ତା ପରେ ଆମେ ଯାଇ ବୃହସ୍ପତି ଗ୍ରହରେ ପହଞ୍ଚିଲୁ । ଏହି ଗ୍ରହଟି ଆମ ପୃଥିବୀଠାରୁ ଚଉବିଶ କୋଟି ମାଇଲ ଏବଂ ସୂର୍ଯ୍ୟଠାରୁ ଅଠଚାଳିଶ କୋଟି ତିରିଶ ଲକ୍ଷ ( ୪୮, ୩୦, ୦୦୦୦୦ ) ମାଇଲ ଦୂରରେ ରହିଛି । ଏହା ଗ୍ରହମାନଙ୍କ ମଧ୍ୟରେ ସବୁଠାରୁ ବଡ଼ । ଏହାର ବ୍ୟାସ ( ଏ ମୁଣ୍ଡରୁ ସେ ମୁଣ୍ଡଯାଏ

ମଜ୍ଜି ଫୋଡ଼ ଯେଉଁ କାଠି ପୂରାଇବାକୁ ହେବ) ୮୬ହଜାର ୭ଶହ ୨୦୦ମାଇଲ୍ । ଆମ ପୃଥିବୀଠାରୁ ଏହା ଅତି ବେଶି ଗୁଣ ବଡ଼ । ସୂର୍ଯ୍ୟ ଗୁଡ଼ ପାଖରେ ଥରେ ବୁଲି ଆସିବାକୁ ଏହାକୁ ବାର୍ ବର୍ଷ ସମୟ ଲାଗିଥାଏ । ବୃହସ୍ପତିରେ କୌଣସି ଗଛଲତା ବା ଜୀବଜନ୍ତୁ ନାହାନ୍ତି । ସେଠାରେ ପାଣି ଥିଲା ପରି ମଧ୍ୟ ଜଣାଯାଏ ନାହିଁ । ଆମ ପୃଥିବୀ ପରି ତାହା ଠାଣ ନୁହେ—ହାଲୁକା ।

ତା ପରେ ଆମେ ଶନିଗ୍ରହକୁ ଗଲୁ । ଶନିଗ୍ରହ ସୂର୍ଯ୍ୟଠାରୁ ଅଠାଅଶି କୋଟି ଷାଠିଏ ଲକ୍ଷ (୮୮,୬୦,୦୦୦୦୦) ମାଇଲ୍ ଦୂରରେ ରହୁଛି । ଆମ ପୃଥିବୀଠାରୁ ତାର ଦୂରତ୍ୱ ୭୯ କୋଟି ୩୦ଲକ୍ଷ ମାଇଲ । ଆମେ ତ ଶନିଗ୍ରହରେ ପହଞ୍ଚି ପ୍ରଥମେ ବାଟ ବଣା ହୋଇଗଲୁ । ତା ଗୁଡ଼ ପାଖରେ ଗୋଟାଏ ବଡ଼ ପାଚେରୀ ଠିଆ ହୋଇଥିବାର ଦେଖିଲୁ । ଆମ ଗୁରୁଜୀ କହିଲେ—ଏହା ଶନିଗ୍ରହର ଉପଗ୍ରହସବୁ । ଏଗୁଡ଼ିକ ଲାଗାଲାଗି ହୋଇ ସବୁବେଳେ ଶନିଗ୍ରହ ଗୁଡ଼ପାଖରେ ଘୂରୁଥିବାରୁ ଗୋଟିଏ ଗୋଲ ପାଚେରୀ ସୃଷ୍ଟି ହୋଇଛି । ଏହି ପାଚେରୀର ବ୍ୟାସ ଏକସ୍ତରି ହଜାର ମାଇଲ ଓ ମୋଟା ଦଶମାଇଲ ଯାଏ ହେବ । ଏହାକୁ ଶନିଗ୍ରହର ବଳୟ କହନ୍ତି । ଏହା ବାଦ୍ ମଧ୍ୟ ଶନିର ଆଉ ଦଶୋଟି ଉପଗ୍ରହ ବା ଚନ୍ଦ୍ର ଅଛନ୍ତି ।

ଏହା ଶୁଣି ଆମେ ବାବା ହୋଇଗଲୁ । ଆମର ଗୋଟିଏ ବୋଲି ଜହ୍ନମାମୁ ! ଆଉ ଶନିଗ୍ରହବାସୀଙ୍କର ଦଶୋଟି ଜହ୍ନମାମୁ— କେଡ଼େ ଭାଗ୍ୟବାନ୍ ସେମାନେ !

ଆମ କଥାରେ ଚାଳକ ହସିଉଠିଲେ । ସେ କହିଲେ— ଶନି ଗ୍ରହରେ କେହି ଥିଲେ ସିନା ସେମାନଙ୍କୁ ଭାଗ୍ୟବାନ୍ କୁହାଯିବ ! ମାତ୍ର ଏଠାରେ କେହି ନାହାନ୍ତି । ସୂର୍ଯ୍ୟଠାରୁ ଏହା



[ ଶନିଗ୍ରହ ]

ଅତି ଦୂରରେ, ତେଣୁ ସବୁବେଳେ ଏଠାରେ ଅସହ୍ୟ ଥଣ୍ଡା । ପାଣି ପବନ ବି ଏଠାରେ ନାହିଁ; ଜୀବଜନ୍ତୁ ବା ବୃକ୍ଷଲତା ଏଠାରେ ରହିବେ କିପରି ?

ସେ ପୁଣି କହିଲେ—ଏହି ଗ୍ରହଟି ସୂର୍ଯ୍ୟ ଚାରିପାଖରେ ଥରେ ବୁଲିଆସିଲା ବେଳକୁ ଆମ ପୃଥିବୀ ସୂର୍ଯ୍ୟ ଚାରିପାଖରେ ଅଣତିରିଶ ଥର ବୁଲି ଆଉ ଅଧେ ବାଟ ଯାଇଥାଏ । ତେଣୁ ଶନିଗ୍ରହର ଯେ ବର୍ଷେ, ତାହା ଆମର ଅଣତିରିଶ ବର୍ଷ ପାଞ୍ଚ ମାସ । ଏହାର ବ୍ୟାସ ଏକସ୍ତରି ହଜାର ପାଞ୍ଚଶହ ମାଇଲ ଲମ୍ବ ।

ସେଠାରୁ ଆମ ଉଡ଼ାଜାହାଜ ଆଗକୁ ଚାଲିଲା । ଅନବରତ ତାହା ଚାଲିଥାଏ । ବାଟରେ ଆଉ କୌଣସି ଗ୍ରହ ଆମେ ଦେଖିବାକୁ

ପାରିଲୁ ନାହିଁ । ପୂରା ବର୍ଷେ ଓ ଗୁରୁ ଦିନ ଗଲା ପରେ ଆମେ ଯାଇ ଇନ୍ଦ୍ର ଗ୍ରହରେ ପହଞ୍ଚିଲୁ । ଏହାକୁ 'ଇଉରାନସ୍' ବୋଲି ମଧ୍ୟ କୁହାଯାଏ ।

ଏହି ଇନ୍ଦ୍ର ଗ୍ରହ ସୂର୍ଯ୍ୟଠାରୁ ୧୭୮ କୋଟି ଦୁଇ ଲକ୍ଷ ମାଇଲ ଦୂରରେ ରହିଛି । ଏଠାରେ ଏତେ ଥଣ୍ଡା ଯେ, ଗୋଡ଼ ହାତ କାଠ ମାରିଯିବ; ଦେହ ଭିତରେ ଥିବା ରକ୍ତ ବରଫ ପାଲଟି ଯିବ । ଆମ ଉଡ଼ାଜାହାଜରେ ଯଥେଷ୍ଟ ଗରମ ବାୟୁ ରହିଥାଏ; ତେଣୁ ଆମକୁ ବିଶେଷ କଷ୍ଟ ହେଉ ନ ଥାଏ ।

ଏହି ଗ୍ରହଟି ସୂର୍ଯ୍ୟ ଚାରି ପାଖରେ ଥରେ ଘୂରିବାକୁ ଚଉରାଅଶି ବର୍ଷ ସମୟ ଲାଗେ । ଏହାର ବ୍ୟାସ ବତିଶହଜାର ଚାରିଶହ ମାଇଲ ଲମ୍ବ । ଏହାର ଚାରୋଟି ଉପଗ୍ରହ ବା ଚନ୍ଦ୍ର ଅଛନ୍ତି ।

ଆମେ ଆଉ ସେଠାରେ ବେଶି ସମୟ ରହିପାରିଲୁ ନାହିଁ । ଉଡ଼ାଜାହାଜ ଚାଳକ କହିଲେ—ଆଉ ତ ଆଗକୁ ଯାଇ ହେବ ନାହିଁ; ଚାଲ ଏଇଠାରୁ ଆମ ପୃଥିବୀକୁ ଫେରିଯିବା ।

ମୁଁ ଓ ମୋର ସାଙ୍ଗ ଏକ ସମୟରେ ଆପତ୍ତି କରି ଉଠିଲୁ ।

ଉଡ଼ାଜାହାଜ ଚାଳକ କହିଲେ— ଦେଖ, ଏଣିକି ଉପରକୁ ଗଲେ ଆମେ ଆଉ ବଞ୍ଚିପାରିବା ନାହିଁ । ଆଗରେ ତ ଅସହ୍ୟ ଥଣ୍ଡା । ସେଥିରେ ପୁଣି ପାଖଆଖରେ ଆଉ କୌଣସି ଗ୍ରହ ନାହାନ୍ତି । ଆଉ ଶହେ କୋଟି ମାଇଲ ଦୂରକୁ ଗଲେ ଯାଇ ଆମେ ବରୁଣ ଗ୍ରହରେ ପହଞ୍ଚିବା । ଏହାକୁ 'ନେପ୍‌ଚ୍ୟୁନ୍' ଗ୍ରହ ବୋଲି ଅନେକେ କହନ୍ତି । ଏତେ ବାଟ ଆମ ଉଡ଼ାଜାହାଜ ଆଉ ଯାଇ ପାରିବ ନାହିଁ । ସେଠାରେ ବିଶେଷ କିଛି ମଧ୍ୟ ଦେଖିବାର ନାହିଁ ।

ଏହି ବରୁଣ ଗ୍ରହଟି ସୂର୍ଯ୍ୟ ଗ୍ରହ ପାଖରେ ଥରେ ଘୁରିବାକୁ ଯେତେ ସମୟ ନିଏ, ସେହି ସମୟ ମଧ୍ୟରେ ଆମ ପୃଥିବୀ ୧୬୪ ଥର ସୂର୍ଯ୍ୟ ଗ୍ରହପାଖରେ ଘୁରି ସାରିଥାଏ । ସେଇଥିରୁ ବୁଝିବ, ଏ ଗ୍ରହକୁ କେତେ ବଡ଼ବୃତ୍ତ ଉପରେ ବୁଲିବାକୁ ପଡ଼େ । ଆମ ପୃଥିବୀ ପରି ଏହାରି ଗୋଟିଏ ମାତ୍ର ଉପଗ୍ରହ ରହିଛି ।

ବରୁଣ ଗ୍ରହ ପରେ ୧୩୯ କୋଟି ମାଇଲ୍ ଗଲେ ସବା ଶେଷ ଗ୍ରହ ଯମ ଦେଖା ମିଳିବ । ଏହାର ଅନ୍ୟ ନାମ 'ପ୍ଲୁଟୋ' । ଏଠାକୁ ଯିବା ଆଗରୁ ଆମେ ଯମପୁରକୁ ଯାଇ ସାରିଥିବା । ତେଣୁ ସେଠାକୁ ଯିବା ଆଉ ଦରକାର ନାହିଁ ।

ଆମେ ଯମ ଗ୍ରହରେ ଯାଇ ପହଞ୍ଚିଲା ବେଳକୁ ଆମର ପୃଥିବୀକୁ ବାହାରିବା ଗୁରୁ ବର୍ଷ ଆଠ ମାସ ହୋଇ ଯାଇଥିବ । ସେଠାରୁ ପୁଣି ପୃଥିବୀକୁ ଫେରିବାକୁ ସେହି ଗୁରୁ ବର୍ଷ ଆଠ ମାସ ଲାଗିବ । ଏ ନଅ ବର୍ଷ ଗୁରୁ ମାସ ଆମେ ବାହାରେ ଏପରି ଭାଇ ରହିପାରିବା ନାହିଁ । ତେଣୁ ଏହିଠାରୁ ହିଁ ଫେରିଯିବା ଭଲ ।

ମୁଁ ପଚାରିଲି—ତୁମେ ଯମଗ୍ରହ ବିଷୟରେ ତ କିଛି କହିଲ ନାହିଁ ।

ଗୁରୁଜୀ ଜବାବ ଦେଲେ—ଯମ ଗ୍ରହ ଏତେ ଦୂରରେ ଯେ, ତା ବିଷୟରେ ପଣ୍ଡିତମାନେ ବେଶି କିଛି ଜାଣିପାରି ନାହାନ୍ତି । ତେବେ ମୋଟାମୋଟି ଏତିକି ସ୍ଥିର ହୋଇଛି ଯେ, ଏ ଗ୍ରହଟି ସୂର୍ଯ୍ୟଠାରୁ ୪୧୮ କୋଟି ମାଇଲ୍ ଦୂରରେ ରହିଛି । ସୂର୍ଯ୍ୟ ଗ୍ରହ-ପାଖରେ ଥରେ ବୁଲି ଆସିବାକୁ ତାକୁ ୨୪୮ ବର୍ଷ ସମୟ ଲାଗେ ।

ତାର ଉପଗ୍ରହ ଅଛନ୍ତି କି ନାହିଁ କିମ୍ବା ତା ବାଷ୍ପପୂର୍ବରେ 'ଅତ୍ କୁଟି ଇଥା ଜଣା ପଡ଼ ନାହିଁ ।




[ ସୂର୍ଯ୍ୟ ଚୁର ପାଖରେ ବୁଲୁଥିବା ଗ୍ରହ ]

ଉଡ଼ାଜାହାଜ ଚାଳକଙ୍କ ପରାମର୍ଶ ଅନୁଯାୟୀ ଆମେ ସେଠାରୁ ଫେରିଲୁ । ସେତେବେଳକୁ ପୃଥିବୀ ଛାଡ଼ିବା ଆମର ପ୍ରାୟ ଦୁଇ ବର୍ଷ ହୋଇ ଯାଇଥାଏ। ଆକାଶରେ ପୁଣି ଦୁଇ ବର୍ଷ ଉଡ଼ି ଉଡ଼ି ଆମେ ଆସି ପୃଥିବୀରେ ପହଞ୍ଚିଲୁ ।

ଏ ଗୁରୁ ବର୍ଷରେ ଆମେ ବହୁତ କଷ୍ଟ ପାଇଲୁ ସତ; ମାତ୍ର ଯେତେ କଥା ଶିଖିଲୁ, ତା ତୁଳନାରେ ସେ କଷ୍ଟ କିଛି ନୁହେ।

## ଗ୍ରହ ଓ ନକ୍ଷତ୍ର

ପୃଥିବୀକୁ ଫେରିଆସି ଆମେ ଟିକିଏ ସୁସ୍ଥ ହେଲୁ। ଦୁଇ ଚାରି ଦିନ କଟିଗଲା ପରେ ଯାଇ ସେ ଉଡ଼ାଜାହାଜ ଗୁରୁଙ୍କ ପାଖରେ ହାଜର। ତାଙ୍କୁ କହିଲୁ, ତୁମେ ତ ଆମକୁ ମୋଟେ ଗୁରୋଟି ଗ୍ରହ ଦେଖାଇଲ, ଆଉ ଗୁରୋଟି ଗ୍ରହ କଥା କହିଲ। ଆମ ପୃଥିବୀ ମଧ୍ୟ ଗୋଟିଏ ଗ୍ରହ। ଏପରି ମୋଟ ନଅଟି ଗ୍ରହ ହେଲା। ମାତ୍ର ଆକାଶରେ ଏ ଯେଉଁ ଅସଂଖ୍ୟ ତାରା ଦେଖା ଯାଉଅଛନ୍ତି, ସେଥି ମଧ୍ୟରୁ ଏ ସାମାନ୍ୟ ନଅଟା ତ କିଛି ନୁହେ। ଏ ତାରା ପାଖକୁ ଆମକୁ ନେଇଯାଅ; ନ ହେଲେ ତାଙ୍କ ବିଷୟରେ ଯାହା ଜାଣ, ତାହା କୁହ।

ଗୁରୁଜୀ ହସି ହସି କହିଲେ—ଏ ତାରାଙ୍କ ପାଖକୁ ଯିବା ଅସମ୍ଭବ। ଯେଉଁ ସମୟରେ ଏପରି ଉଡ଼ାଜାହାଜ ତିଆରି ହେବ, ଯାହା କି ଘଣ୍ଟାକୁ କୋଟି କୋଟି ମାଇଲ୍ ଯାଇପାରିବ, ସେହି ସମୟରେ ଅବା ଏ ତାରାଙ୍କ ପାଖକୁ ଯାଇ ହେବ। ତେବେ ଏ ତାରାଙ୍କ ବିଷୟରେ ମୁଁ ଯାହା ଜାଣେ, ତାହା କହୁଛି।

ଆକାଶରେ ଯେତେ ତାରା ଦେଖାଯାଆନ୍ତି, ସେଥିରୁ ଏ ଆଠୋଟି ଗ୍ରହଙ୍କୁ ବାଦ୍ ଦେଲେ ବାକି ପ୍ରାୟ ସମସ୍ତଙ୍କୁ ନକ୍ଷତ୍ର କୁହା-ଯାଏ। ଏ ନକ୍ଷତ୍ରସବୁ ଗୋଟିଏ ଗୋଟିଏ ଆମର ସୂର୍ଯ୍ୟ ପରି।

ସେମାନଙ୍କର ବି ସ୍ୱତନ୍ତ୍ର ଗ୍ରହ ଅଛନ୍ତି . ଏବଂ ସେ ·ଗ୍ରହମାନେ ସେ ନକ୍ଷତ୍ର ଗୁଡ଼ିକପାଖରେ ଘୂରୁଅଛନ୍ତି । ମାତ୍ର ସେଗୁଡ଼ିକ ଆମଠାରୁ ଏତେ ବେଶି ଦୂରରେ ଯେ, ଟେଲିସ୍କୋପରେ ଆମେ ତାଙ୍କୁ ଦେଖି ପାରୁ ନାହିଁ ।

ପଣ୍ଡିତମାନେ ନାନା ପ୍ରକାର ହିସାବ କରି ଏପର୍ଯ୍ୟନ୍ତ ଠିକ୍ କରିଅଛନ୍ତି କି, ଆମ ଆକାଶରେ ଦଶକୋଟି ପର୍ଯ୍ୟନ୍ତ ନକ୍ଷତ୍ର ଅଛନ୍ତି । ଏଥିରୁ ଅଧିକ ବେଶି ହେବା ବି ସମ୍ଭବ । ମାତ୍ର ରାତିରେ ଆମେ ଯେଉଁ ତାରାସବୁ ଦେଖୁଁ, ତାର ସଂଖ୍ୟା ମୋଟେ ତିନିହଜାର ଭିତରେ । ତାର କାରଣ, ଆମ ଆଖି ଆଗରେ ଆକାଶ ଅଧେ ମାତ୍ର ଦେଖାଯାଏ । ସେଥିରେ ପୁଣି ଅସଂଖ୍ୟ ତାରା ଏତେ ଦୂରରେ ଅଛନ୍ତି ଯେ, ସେଗୁଡ଼ିକ ଖାଲି ଆଖିକୁ ଜମା ଦିଶନ୍ତି ନାହିଁ ।

ସେହି ଦଶକୋଟି ନକ୍ଷତ୍ର ପରି ଆମ ସୂର୍ଯ୍ୟ ବି ଗୋଟିଏ ନକ୍ଷତ୍ର । ମାତ୍ର ସୂର୍ଯ୍ୟ ଆମ ପାଖରେ ଥିବାରୁ ଏତେ ବଡ଼ ଦେଖାଯାଏ ଓ ତାର କିରଣ ଆମକୁ ଏପରି ଲାଗେ । ମାତ୍ର ଅନେକ ନକ୍ଷତ୍ର ଅଛନ୍ତି, ଯେ କି ସୂର୍ଯ୍ୟଠାରୁ ପାଞ୍ଚଶହ ଗୁଣ ବଡ଼ । ସେମାନଙ୍କ ଉତ୍ତାପ ଆମ ସୂର୍ଯ୍ୟ ଉତ୍ତାପଠାରୁ ଲକ୍ଷେ ଗୁଣ ବେଶି । ତଥାପି ସେମାନେ ସେହିଭଳି ଦୂରରେ ଥିବାରୁ ଆମ ଆଖିକୁ ଅତି ସାନ ଦିଶନ୍ତି ଏବଂ ସେମାନଙ୍କ ତାତି ଆମ ପାଖରେ ପହଞ୍ଚିପାରେ ନାହିଁ ।

ମୁଁ ଗୋଟିଏ ନକ୍ଷତ୍ର କଥା କହୁଛି । ସୂର୍ଯ୍ୟ ଛଡ଼ା ଅନ୍ୟ ଯେଉଁ ନକ୍ଷତ୍ରଟି ପୃଥିବୀର ପାଖରେ ଅଛି, ପଣ୍ଡିତମାନେ 'ପ୍ରକ୍ସିମା ସେଣ୍ଟାଉର୍' ବୋଲି ତାର ନାମ ଦେଇଅଛନ୍ତି । ପୃଥିବୀଠାରୁ ଏହା

ପଚାଶ ଲକ୍ଷକୋଟି ମାଇଲ ଦୂରରେ ରହନ୍ତି । ତାର ଅଲଅ ପୃଥିବୀରେ ପହଞ୍ଚିବାକୁ ଗୃହ ବର୍ଷ ଲଗିଯାଏ । ଏଥିରୁ ବୁଝିପାରିବ, ନକ୍ଷତ୍ରମାନେ ପୃଥିବୀଠାରୁ କେତେ ଦୂରରେ ଅଛନ୍ତି ।

ମୋ ସାଙ୍ଗ କହିଲେ—ତା ହେଲେ ଏ ତାରାଗୁଡ଼ିକ ଗୋଟିଏ ଗୋଟିଏ ସୂର୍ଯ୍ୟ ବା ସୂର୍ଯ୍ୟଠୁ ବଡ଼ ଭାଇ । କିନ୍ତୁ ମୋ ଅଈମା କଅଣ କହୁଥିଲେ ଜାଣ ?

ମୁଁ ପଚାରିଲି—କଅଣ କହୁଥିଲେ ?

ସେ ଉତ୍ତର ଦେଲେ—ଅଈମା କହୁଥିଲେ, ପୃଥିବୀରୁ ଯେତେ ଲୋକ ମରନ୍ତି, ଏ ତାରାଗୁଡ଼ିକ ସେମାନଙ୍କ ଆଖି ।

ଏହା ଶୁଣି ଉଡ଼ାଜାହାଜ ଗୃଳକ ହୋ ହୋ ହସି ଉଠିଲେ ।

ମୁଁ କହିଲି—ବର୍ତ୍ତମାନ ସିନା ମୁଁ ବଡ଼ ହୋଇଗଲିଣି । କିନ୍ତୁ ପିଲାଦିନେ ମୁଁ ଜାଣିଥିଲି ଯେ, ସଂସାରରେ ଯେତେ ଧାର୍ମିକ ଲୋକ ମରନ୍ତି, ସେମାନେ ଯାଇ ଅକାଶରେ ତାରା ହୁଅନ୍ତି । ଯେପରି ଧ୍ରୁବ ତାରା, ସପ୍ତର୍ଷିମଣ୍ଡଳରେ ଥିବା ସାତଜଣ ଋଷି ।

ଉଡ଼ାଜାହାଜ ଗୃଳକ ହସି ହସି କହିଲେ—ଆମ ପୁରାଣ ଶାସ୍ତ୍ରରେ ଅବଶ୍ୟ ଏହିପରି ଲେଖାଅଛି ; ମାତ୍ର ତାହା ଠିକ୍ କି ନୁହେଁ, କିଏ କହିପାରିବ ?

ସେହି ସମୟରେ ଅକାଶରୁ ଗୋଟିଏ ତାରା ଖସିଲା । ସେତେବେଳେ ଆମ ଆଖି ଝଲସି ଗଲା ।

ଜଡ଼ାକାହାଙ୍କ ଗୁଳକ କହିଲେ—ପୁରୁଣା କାଳର ଲୋକେ କହନ୍ତି, ସ୍ୱର୍ଗରେ ଯେଉଁ ଧାର୍ମିକ ଲୋକେ ଥାଆନ୍ତି, ସେମାନେ ସେଠାରେ ପାପ କାମ କଲେ ଖସିପଡନ୍ତି । ତାହା ହିଁ ତାରା ଖସିଲା ବୋଲି କୁହାଯାଏ । ମାତ୍ର ତା ନୁହେଁ । ଅନେକ ଗ୍ରହରେ ଅଗ୍ନେୟଗିରି ରହିଛନ୍ତି । ସମୟ ସମୟରେ ସେହି ଅଗ୍ନେୟଗିରିରୁ ନିଆଁ ଟୁକୁଲ ଉପରକୁ ଉଡି ଖସିପଡେ । ତାହା ଯେତେବେଳେ ଆମ ପୃଥିବୀର ବାୟୁସ୍ତର ମଧ୍ୟକୁ ଆସିଯାଏ, ସେତେବେଳେ ବାୟୁ ସହିତ ଘଷି ହୋଇ ଜଳିଉଠେ । ଆମେ ସେହି ଆଲୁଅ ଦେଖିପାରୁଁ । ଗୁଣ୍ଡିକନା ତାହା ଖସି କେଉଁଠାରେ ହେଲେ ମାଟିରେ ପଡ଼ିଯାଏ ବା ଜଳି ପାଉଁଶ ହୋଇଯାଏ । ଏହାକୁ ହିଁ ତାରା ଖସିବା ବା ଉଲ୍‌କାପାତ ବୋଲି କୁହାଯାଏ ।

ମୁଁ ପଚାରିଲି—ମାଟିରେ ପଡ଼ିଲେ ତାହା କଅଣ ଲୋକେ ଦେଖିପାରନ୍ତି ?

ଜଡ଼ାକାହାଙ୍କ ଗୁଳକ କହିଲେ—ହଁ, ଅନେକ ଉଲ୍‌କା ପୃଥିବୀର ବିଭିନ୍ନ ସ୍ଥାନରେ ରଖାଯାଇଛି । ପରୀକ୍ଷା କରି ଦେଖାଯାଇଛି, ତାହା ଧାତୁମିଶା ପଥର । କେତେକ 'ଯାଦୁଘରେ' ଏହିପରି ଉଲ୍‌କା ସାଇତା ହୋଇ ଥୁଆ ହୋଇଛି । କଲିକତାର ଯାଦୁଘରେ ଏହିପରି ଗୋଟିଏ ଉଲ୍‌କାପିଣ୍ଡ ଅଛି, ତାର ଓଜନ ପ୍ରାୟ ପଞ୍ଚାନବେ ମହଣ ହେବ । ଗ୍ରୀନ୍‌ଲାଣ୍ଡ୍ ଦେଶରେ କେତେ ଦିନ ତଳେ ଗୋଟାଏ ଏତେବଡ଼ ଉଲ୍‌କା ପଡ଼ିଥିଲା ଯେ; ତାର ଓଜନ ଥିଲା ହଜାରେ ମହଣ । ମେକ୍ସିକୋ ଦେଶରେ ଗୋଟିଏ ଉଲ୍‌କାପଥର ରଖାଯାଇଛି—ତାର ଓଜନ ତେର ହଜାର ପାଞ୍ଚଶହ ମହଣ । ସାଇବେରିଆରେ ଥରେ ଗୋଟିଏ ଉଲ୍‌କା ପଡ଼ିଥିଲା । ତାହା

ଏତେବଡ଼ ଯେ; ମାଟିରେ ପଡ଼ିଲାବେଳେ ପାଖପାଖ ଚାରିଶ ମାଇଲ ଦୂର ଅଞ୍ଚଳରେ ଥିବା ଗାଁଗଣ୍ଡା ସବୁ ପୋଡ଼ି ପକାଇଥିଲା । ଆଉ ଶହ ମାଇଲ ଦୂରରେ ଥିବା ଲୋକେ ସେ ତାତି ଅନୁଭବ କରିଥିଲେ ।

ଚାଳକ ପୁଣି କହିଲେ—ଅକାଶରେ ସମୟ ସମୟରେ ଧୂମକେତୁ ଦେଖାଯାଏ । ଏହା ଏକ ଅଦ୍ଭୁତ ଜିନିଷ । ଅତି ଉଜ୍ଜ୍ୱଳ ବାଷ୍ପରେ ଏହାର ଦେହ ଗଢ଼ା ହୋଇଥାଏ । ମୁଣ୍ଡ ପାଖଟା ଖୁବ୍ ଉଜ୍ଜ୍ୱଳ; ମୁଣ୍ଡଠାରୁ କ୍ରମେ ସରୁ ହୋଇ ଗୋଟାଏ ଲାଞ୍ଜ କିଛିଦୂର ଲମ୍ବି ଯାଇଥାଏ; ତେଣୁ କେହି କେହି ଏହାକୁ ଲାଞ୍ଜତାରା ନାମ ଦେଇଅଛନ୍ତି ।

ଏହିପରି ଅନେକଗୁଡ଼ିଏ ଧୂମକେତୁ ଆକାଶମଣ୍ଡଳରେ ଅଛନ୍ତି । ଏପର୍ଯ୍ୟନ୍ତ ଜଣାଯାଇଛି, ଗୋଟିଏ ବଡ଼ ଧୂମକେତୁ ପ୍ରତି ପଞ୍ଚସ୍ତରି ବର୍ଷରେ ଥରେ ଲେଖାଏଁ ଆମକୁ ଦେଖା ଦେଉଥାଏ ।

ମୁଁ ହଠାତ୍ କହିଉଠିଲି—ଥାଉ ଥାଉ, ଆଉ ଏସବୁ ବଡ଼ ବଡ଼ କଥା ଆମ ମଗଜରେ ପଶୁ ନାହିଁ । ଏ ଲକ୍ଷ ଲକ୍ଷ, କୋଟି କୋଟି ମାଇଲ ହିସାବ ତ ମୁଣ୍ଡକୁ ଆମର ଗୋଳମାଳିଆ କରିଦେଲାଣି । ତା ଉପରେ ପୁଣି ଧୂମକେତୁ । ଅଜା କହୁଥିଲେ—ଧୂମକେତୁ ଦେଖାଦେଲେ ପୃଥିବୀରେ ଦୁର୍ଭିକ୍ଷ ପଡ଼େ; ଲାଞ୍ଜତାରା ପଡ଼ିଲେ ବଡ଼ଲୋକ ମରନ୍ତି ।

ଚାଳକ ଏହା ଶୁଣି ଠୋ ଠୋ ହସି ଉଠିଲେ । ସେ କହିଲେ, ଏ ତ ଆଉ ଅଜାକାଳ ନୁହେଁ; ଏହା ହେଉଛି ତୁମ ଆମ ସମୟ ।

---

ମୁଦ୍ରାକର—ଶ୍ରୀ ଘନଶ୍ୟାମ ଦାଶ, ନ୍ୟୁ ଷ୍ଟୋର୍ସ ପ୍ରେସ୍, ବ୍ରହ୍ମପୁର